ଆସ୍ତର ପାଇଁ ତନ୍ତୁ ବା ସୂତାର ତାଳି (Patch), ଧାତୁର ପିଚାସନ୍ଧି, ଚଳପ୍ରଚଳ କରିହେଉଥିବା କୃତ୍ରିମ ଅଙ୍ଗ, ସିଲିକୋନ ବା ଆକ୍ରିଲିକ୍ କୋଷ (testicles) ଜଙ୍ଘପାଇଁ ଧାତୁରସ୍ତମ୍ଭ, ଧାତୁର ଅଙ୍ଗୁଳି ସନ୍ଧି, ଧାତୁର ଆଣ୍ଠୁ ସନ୍ଧି, ଧାତୁର ଆଣ୍ଠୁ ଟୋପି, ଧାତୁର ଆଣ୍ଠୁ ତଳହାଡ଼ (skin bone) ଇତ୍ୟାଦି ।

**ଶକ୍ତି** — କୃତ୍ରିମ ଅଙ୍ଗପ୍ରତ୍ୟଙ୍ଗକୁ କାର୍ଯ୍ୟକ୍ଷମ କରିବାକୁ ବା ଚଳାଇବାକୁ ଯେଉଁ ବାଟେରୀଚାଳିତ ଯନ୍ତ୍ର ବା Power Pack ଖଞ୍ଜା ଯାଉଛି, ସେ ଗୁଡ଼ିକର ଆୟୁଷ ସୀମାବଦ୍ଧ, ପୁଣି ମଣିଷ ଶରୀରର ଗ୍ରହଣଯୋଗ୍ୟ ଏବଂ ସଂପୂର୍ଣ୍ଣ ନିର୍ଭରଶୀଳ ବସ୍ତୁରେ ଏହା ତିଆରି ହେବା ଉଚିତ, କିନ୍ତୁ ଏପରି ବସ୍ତୁ ମିଳିବା କଷ୍ଟ । ମାଂସପେଶୀର ସଙ୍କେତକୁ ଗ୍ରହଣ କରି କାମ କଲାଭଳି ମଟର ମଧ୍ୟ ଉଦ୍‌ଭାବନ ହୋଇନାହିଁ । ବିଶେଷଜ୍ଞମାନେ ଏସବୁ ସମସ୍ୟାକୁ କ୍ଷଣସ୍ଥାୟୀ ମନେ କରନ୍ତି । ବସ୍ତୁ ବିଜ୍ଞାନରେ ନୂତନ ଉଦ୍‌ଭାବନ ସଙ୍ଗେ ସଙ୍ଗେ ଏହାର ସମାଧାନ ହୋଇଯିବ ବୋଲି ସେମାନେ ଆଶା କରନ୍ତି । କୃତ୍ରିମ ଅଙ୍ଗ ଚଳାଚଳ ବିଜ୍ଞାନ ବା Cybernetics ବିଦ୍ୟା ଏହି ଦିଗରେ ଲାଗିପଡ଼ିଛି । ସ୍ପର୍ଶ, ତାପ, ଚାପ ଓ ଯନ୍ତ୍ରଣା ଭଳି ଅନୁଭୂତିକୁ ଯନ୍ତ୍ରରୁ ସ୍ନାୟବିକ ବ୍ୟବସ୍ଥାକୁ ରୂପାନ୍ତର କରିବା କଷ୍ଟକର ହେଉଥିବାରୁ ବୈଜ୍ଞାନିକମାନେ ଶରୀର ବାହାରୁ ଏହି ପ୍ରକାର ସମ୍ବାଦ ମସ୍ତିଷ୍କକୁ ପ୍ରେରଣ କରିବାର ବ୍ୟବସ୍ଥା କରୁଛନ୍ତି । ସ୍ପନ୍ଦନ, ଶବ୍ଦତରଙ୍ଗ, ଆଲୋକ ତଥା ମୃଦୁ ବିଦ୍ୟୁତ୍ ତରଙ୍ଗ ଭଳି କେତେକ ପ୍ରଭାବଦ୍ୱାରା କୃତ୍ରିମଅଙ୍ଗ ପରିଧାନକାରୀ ଏହି ପ୍ରକାର ଅନୁଭୂତି ପାଇପାରେ ଏହା ହେଲା ଏବକାର ଗବେଷଣା ।

**ଦେବ ନା ଦାନବ** — ଲକ୍ଷଲକ୍ଷ ବର୍ଷ ପରେ ମଣିଷ କିପରି ଦେଖାଯାଇପାରେ ? ଅଣ୍ଡାକୃତି ଚନ୍ଦାମୁଣ୍ଡ ଥାଇ ଖୁବ୍ ବୁଦ୍ଧିମାନ ହୋଇପାରେ । ଖୁବ୍‌ଡେଙ୍ଗା, ଦୃଢ଼ ମାଂସପେଶୀ, ଦେହଯାକ କାତି, ହାତଗୋଡ଼ ବତକଭଳି ଚର୍ମଯୁକ୍ତ ଚଟକା ଆହୁଲା ଭଳି ହୋଇପାରେ । ଅର୍ଦ୍ଧଯନ୍ତ୍ର, ଅର୍ଦ୍ଧମାନ - ରୂପରେ ଅତିରିକ୍ତ କୃତ୍ରିମ ଅଙ୍ଗ ପ୍ରତ୍ୟଙ୍ଗ ବ୍ୟବହାର କ୍ଷମତା ହାସଲ କରି ପ୍ରାଚୀନ କାଳର ପ୍ରବଳପରାକ୍ରମୀ ଦାନବ ଶକ୍ତି ଅର୍ଜନ କରିପାରେ । ଶରୀରର ରୂପ ଯେପରି ହେଉ ନା କାହିଁକି, ମଣିଷର ରୂପ ଅଧିକ ସୁନ୍ଦର, ଆୟୁଷ ଅଧିକ ବର୍ଷ, ଶାରୀରିକ ଶକ୍ତି ଅଧିକ ପ୍ରବଳ ଏବଂ ଧୀଶକ୍ତି ଅଧିକ ଚମତ୍କାର ନିଶ୍ଚୟ ହୋଇପଡ଼ିବ । ଏହା ନ ହେଲେ ଜ୍ଞାନୀଜୀବ ହିସାବରେ ମଣିଷ ଦୁନିଆରୁ ଲୋପ ପାଇଯିବ ।

●